ଗାନ୍ଧୀ ଚିନ୍ତନ -୨୧

# ମହାତ୍ମା ଗାନ୍ଧୀ ଓ ମାର୍‌ଗାରେଟ୍ ସାଙ୍ଗର

## (ନାରୀ ଜାଗରଣର ଦୁଇ ପୁରୋଧା)



ଡକ୍ଟର ବନମାଳୀ ବାରିକ୍

ଗାନ୍ଧୀ ଚର୍ଚ୍ଚା କେନ୍ଦ୍ର

GANDHI STUDY CENTRE

ଭୁବନେଶ୍ୱର-୭୫୧୦୦୧

Bhubaneswar-751001

ଗାନ୍ଧୀ ଚିନ୍ତନ -୨୧



# ମହାତ୍ମା ଗାନ୍ଧୀ
# ଓ
# ମାର୍ଗାରେଟ୍ ସାଙ୍ଗର୍



(ନାରୀ ଜାଗରଣର ଦୁଇ ମହାନ୍ ପୁରୋଧା)

ଡକ୍ଟର ବନମାଳୀ ବାରିକ


ଗାନ୍ଧୀ ଚର୍ଚ୍ଚା କେନ୍ଦ୍ର

**Gandhi Study Center**

ଭୁବନେଶ୍ୱର -୭୫୧୦୦୧

**Bhubaneswar -751001**

ବଳର ଅର୍ଥ ଯଦି ପଶୁବଳ ବୋଲି ବୁଝାଯାଏ ତେବେ ବାସ୍ତବିକ ପୁରୁଷ ଅପେକ୍ଷା ନାରୀ କମ୍ ପଶୁ । ଯଦି ବଳର ଅର୍ଥ ନୈତିକ ବଳ ହୁଏ, ତାହାହେଲେ ନାରୀ ପୁରୁଷଠାରୁ ଅମାପ ଗୁଣରେ ଅଧିକ ବଳବତୀ । ନାରୀର ସହଜ ଜ୍ଞାନ (Intution) ଅଧିକ ନୁହେଁ କି ? ସେ କ'ଣ ଅଧିକ ଆତ୍ମତ୍ୟାଗୀ ନୁହେଁ ? ତା'ର ସହିବା ଶକ୍ତି କ'ଣ ପୁରୁଷଠାରୁ ଅଧିକ ନାହିଁ ? ତା'ର ସାହସ କ'ଣ ପୁରୁଷଠାରୁ ଊଣା ? ସେ ନଥିଲେ ପୁରୁଷ ନଥାନ୍ତା । ଅହିଂସାକୁ ଯଦି ଆମ୍ଭମାନଙ୍କର ସତ୍ତାର ନିୟମ ବୋଲି ଆମେ ସ୍ୱୀକାର କରୁଁ ତାହାହେଲେ ଭବିଷ୍ୟତଟି ନାରୀମାନଙ୍କ ହାତରେ ରହିଛି ବୋଲି କହିବାକୁ ହେବ । ନାରୀ ବ୍ୟତୀତ ଅନ୍ୟ କିଏ ହୃଦୟକୁ ଏତେ ସଫଳ ଭାବରେ ସ୍ପର୍ଶ କରିପାରିବ ?

- ମହାତ୍ମା ଗାନ୍ଧୀ

# ଭୂମିକା

ବିଂଶ ଶତାବ୍ଦୀରେ ନାରୀ-ପୁରୁଷ ସଂପର୍କ; ଯୌନ ଚେତନା ଓ ଜନ୍ମ ନିୟନ୍ତ୍ରଣ ସଂପର୍କରେ ଯେଉଁ ଆଲୋଚନା, ବିତର୍କ ଓ ଗ୍ରନ୍ଥମାନ ରଚନା କରାଯାଇଛି, ସେ ସବୁକୁ ସମୀକ୍ଷାର ପରିସରକୁ ଆଣିଲେ ଦୁଇଜଣ ମହାନ୍ ବ୍ୟକ୍ତି ସ୍ୱତଃ ଦୃଷ୍ଟି ଆକର୍ଷଣ କରନ୍ତି । ଏହି ଦୁଇ ଜଣ ହେଉଛନ୍ତି ମହାତ୍ମାଗାନ୍ଧୀ ଓ ମାର୍ଗାରେଟ୍ ସାଙ୍ଗର୍ । ଗାନ୍ଧୀ ଉପରୋକ୍ତ ବିଷୟବସ୍ତୁ ସଂପର୍କରେ ଆଲୋଚନାରେ ଭାଗ ନେଲାବେଳେ ଏକ ଆଦର୍ଶ ସମାଜ ବ୍ୟବସ୍ଥାର ପରିକଳ୍ପନା କଲାବେଳେ ସାଙ୍ଗର ଗ୍ରହଣ କରିଥିଲେ ଏକ ବାସ୍ତବବାଦୀ ଆଭିମୁଖ୍ୟ । ତେଣୁ ସେମାନଙ୍କର ଲକ୍ଷ୍ୟ ଏକ ଓ ଅଭିନ୍ନ ଥିଲେ ମଧ ପନ୍ଥା ଥିଲା ଭିନ୍ନ ।

ପୃଥିବୀର ଜନସଂଖ୍ୟା ଯେପରି ଦ୍ରୁତ ଗତିରେ ବଢ଼ି ଚାଲିଛି, ସେହି ପରିପ୍ରେକ୍ଷୀରେ ବିଚାର କଲେ ଉଭୟଙ୍କର ପନ୍ଥା ସଂପର୍କରେ ଅଧିକ ଆଲୋକପାତ ହେବା ଆବଶ୍ୟକ । ଶିକ୍ଷିତ ମହିଳାମାନଙ୍କର ବିଚାରବୋଧକୁ ଉଭୟେ ସ୍ୱୀକାର କରିଛନ୍ତି । କିଂତୁ ଦରିଦ୍ର, ଅବହେଳିତ, ନିର୍ଯ୍ୟାତିତ ମହିଳାମାନଙ୍କର ପ୍ରଜନନ ଶକ୍ତିର ଅପବ୍ୟବହାର ଉଭୟଙ୍କୁ ବ୍ୟଥିତ କରିଛି । ଗାନ୍ଧୀଙ୍କୁ ଏ ଦିଗରେ ଇଂଲଣ୍ଡର ସଂସ୍କାରବାଦୀ ନାରୀ ହୋ-ମାର୍ଟିନ୍ ପରିବର୍ତ୍ତିତ କରିପାରି ନଥିଲେ । ସେ ଭାରତ ଛାଡ଼ିବା ପୂର୍ବରୁ କହିଥିଲେ "କିଛିଦିନ ପରେ ମାର୍ଗାରେଟ୍ ସାଙ୍ଗର ଆସୁଛନ୍ତି । ସେ ହିଁ ଆପଣଙ୍କ ପ୍ରଶ୍ନମାନଙ୍କର ଉତ୍ତର ଦେଇପାରିବେ ।"

ଏହାର କିଛିଦିନ ପରେ ଅଖିଳ ଭାରତ ମହିଳା ସମ୍ମେଳନର ନିମନ୍ତ୍ରଣ ପାଇ ୧୯୩୫-୩୬ ମଧରେ ନ'ସପ୍ତାହ ପାଇଁ ସାଙ୍ଗର୍ ଭାରତ ଭ୍ରମଣରେ ଆସିଥିଲେ । ଏହି ସମୟ ଭିତରେ ସେ ଦୁଇଦିନ ପାଇଁ (ଡିସେମ୍ବର ୩-୪, ୧୯୩୫) ଗାନ୍ଧୀଙ୍କ ସହିତ ଆଲୋଚନା କରିଥିଲେ । ଏହି ଆଲୋଚନା କାଳରେ ସାଙ୍ଗର୍ଙ୍କର ସେକ୍ରେଟେରୀ ଜେଟ୍ ଆନ୍ନା ଫିଲପ୍ସ କ୍ଷୀପ୍ର ହସ୍ତରେ ସେମାନଙ୍କର କଥୋପକଥନର ବିବରଣୀ ଲିପିବଦ୍ଧ କରିଥିଲେ । ବିଂଶ ଶତାବ୍ଦୀରେ ହିଁ ତାହା ପ୍ରକାଶ ପାଇଛି । ଏହାର ସମୀକ୍ଷା ଏବେ ବି ଭାରତବର୍ଷର ଅଗଣିତ ନରନାରୀଙ୍କର ଗୋଚରାର୍ଥେ ପ୍ରକାଶିତ ହେବା ଆବଶ୍ୟକ । ଓଡ଼ିଆ ଭାଷାରେ ଏହା ପ୍ରକାଶିତ ହୋଇ ନାହିଁ । ଡକ୍ଟର ବନମାଳୀ ବାରିକ୍ ମୋର ଅନୁରୋଧରେ ଏହି କାର୍ଯ୍ୟ ସମାପନ କରିଛନ୍ତି । କଳେବର ଦୃଷ୍ଟିରେ ଏହା କ୍ଷୁଦ୍ର ହେଲେ ମଧ ଗାନ୍ଧୀ ଓ ସାଙ୍ଗର୍ଙ୍କର ବକ୍ତବ୍ୟର ସାରମର୍ମ ଭାବରେ ଏହାକୁ ଲିପିବଦ୍ଧ କରିବାରେ ସେ ସକ୍ଷମ ହୋଇଛନ୍ତି ।

ମୋର ମନେହୁଏ ଓଡ଼ିଶାର ଗାଁ ଗହଳିରେ ଗାନ୍ଧୀଚିନ୍ତନର ପ୍ରସାର କରିବାରେ ଯେଉଁ କର୍ମୀମାନେ ବ୍ୟାପୃତ ଅଛନ୍ତି, ସେମାନେ ଯଥା ସ୍ଥାନରେ ଏହା ଉପସ୍ଥାପନ କରି ପାରିଲେ ଜନସଂଖ୍ୟା ବୃଦ୍ଧିକୁ ପ୍ରତିହତ କରିହେବ । ଫଳରେ ଜନ୍ମ ନିୟନ୍ତ୍ରଣର ଆବଶ୍ୟକତା ଅନୁସାରେ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଯାଇ ପାରିବ ।

ଅନେକଙ୍କର ଧାରଣା ଯେ ଗାନ୍ଧୀ ଅତିମାତ୍ରାରେ ପରଂପରାବାଦୀ, ରକ୍ଷଣଶୀଳ ଓ ଆଦର୍ଶବାଦୀ ଥିଲେ । ସେମାନେ ଭୁଲିଯାନ୍ତି ଯେ ଗାନ୍ଧୀ ସମସ୍ୟାର ସମାଧାନ ପାଇଁ ସହଯୋଗ କରିବା କ୍ଷେତ୍ରରେ ଏକ ଅଗ୍ରଗାମୀ ବ୍ୟକ୍ତି । ତେଣୁ ସାଙ୍ଗର୍‌ଙ୍କ ସହିତ ଆଲୋଚନା କାଳରେ ଜନ୍ମ ନିୟନ୍ତ୍ରଣର ବିଭିନ୍ନ ବ୍ୟବସ୍ଥା ମଧ୍ୟରୁ କେତେକ ବ୍ୟବସ୍ଥାକୁ ଗାନ୍ଧୀ ଆଂଶିକ ଅନୁମୋଦନ କରି ଏହାର ପ୍ରସାର ଦିଗରେ ପରୋକ୍ଷରେ ସାହାଯ୍ୟ କରିଛନ୍ତି ।

ଗାନ୍ଧୀ ଓ ସାଙ୍ଗର୍‌ଙ୍କ ସମୟରେ ଯେଉଁ ଅସୁବିଧା ସବୁ ଥିଲା, ଶିକ୍ଷାର ପ୍ରସାର, ବୈଷୟିକ ବ୍ୟବସ୍ଥାର ଗତିଶୀଳତା ଫଳରେ ସମାଜ ଜୀବନରେ ଅନେକ ପରିବର୍ତ୍ତନ ଘଟିଛି । ଜନ୍ମ ନିୟନ୍ତ୍ରଣ ପାଇଁ ଅନେକ ନୂତନ ବ୍ୟବସ୍ଥା ସୃଷ୍ଟି ହୋଇ ସାରିଛି । ଏ ସବୁ ସତ୍ତ୍ୱେ ଗାନ୍ଧୀ ଓ ସାଙ୍ଗର୍‌ଙ୍କର ଆଲୋଚନା ଓଡ଼ିଶାର ଅଗଣିତ ନରନାରୀଙ୍କୁ ସାହାଯ୍ୟ କରିପାରେ —ଏହି ଉଦ୍ଦେଶ୍ୟରେ ଏ ପୁସ୍ତିକା ରଚନା କରାଯାଇଛି । ଆଶା ଏହାରର ପ୍ରସାର ଫଳରେ ନାରୀ-ପୁରୁଷ ସଂପର୍କ, ଯୌନ ଚେତନା, ବିବାହ, ବିଚ୍ଛେଦ, ଧର୍ଷଣ ଆଦି ବିଭିନ୍ନ ସମସ୍ୟା ସଂପର୍କରେ ଗାନ୍ଧୀ ଚିନ୍ତନ ଜାଣିବାରେ ଓଡ଼ିଶାବାସୀ ଉପକୃତ ହେବେ ।

ଡକ୍ଟର ବାରିକ୍‌ଙ୍କର ଏହି ଉଦ୍ୟମ ପାଇଁ ତାଂକୁ ମୋର ଗଭୀର ଶୁଭେଚ୍ଛା ଜଣାଉଛି ।

୩୦ ଜାନୁୟାରୀ, ୨୦୧୩ ଆଚାର୍ଯ୍ୟ ଭାବାନନ୍ଦ

# ମହାତ୍ମା ଗାନ୍ଧୀ ଓ ମାର୍ଗାରେଟ୍ ସାଙ୍ଗର୍

## (ନାରୀ ଜାଗରଣର ଦୁଇ ମହାନ୍ ପୁରୋଧା)

୧୯୩୪ ମସିହା କଥା । ସେ ସମୟରେ ଗାନ୍ଧୀଙ୍କର ଖ୍ୟାତି ଓ ସଫଳତା ସାରା ବିଶ୍ୱର ଲୋକଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ପୃଥିବୀର ବିଭିନ୍ନ ଦେଶରୁ ବିଶିଷ୍ଟ ବ୍ୟକ୍ତିମାନେ ତାଙ୍କୁ ସାକ୍ଷାତ କରିବାପାଇଁ ଆସୁଥିଲେ । ଓ୍ୱାର୍ଦ୍ଧାର ଆଶ୍ରମ ଥିଲା ଆକର୍ଷଣର କେନ୍ଦ୍ରବିନ୍ଦୁ । ତାଙ୍କର କିଂଚିତ୍ ସାନ୍ନିଧ ପାଇଁ ଲୋକଙ୍କ ବ୍ୟାକୁଳତା ଲକ୍ଷ୍ୟ କରିବା କଥା । ତାଛଡ଼ା ବିବିଧ ସମସ୍ୟାର ସମ୍ମୁଖୀନ ହୋଇ ଅନେକ ବ୍ୟକ୍ତି ସେଠାକୁ ଆସିବା କିଛି ନୂଆ କଥା ନଥିଲା । ଗାନ୍ଧୀ-ମହାପୁରୁଷ । ତାଙ୍କ ସହ କିଛି ସମୟ ବାର୍ତ୍ତାଳାପ କରିବା, ଭାବ ବିନିମୟ କରିବା, ଚର୍ଚ୍ଚାରେ ଭାଗ ନେବା ଥିଲା ଅତ୍ୟନ୍ତ ସୌଭାଗ୍ୟର ବିଷୟ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଗାନ୍ଧୀ ସେତେବେଳକୁ ଗ୍ରାମ ସଂଗଠନ ଓ ରଚନାତ୍ମକ କାର୍ଯ୍ୟରେ ସଂପୃକ୍ତ ଥିଲେ । ଗ୍ରାମୀଣ ଲୋକମାନଙ୍କ ସ୍ୱାସ୍ଥ୍ୟ ସମସ୍ୟା ଓ ଉପଯୁକ୍ତ ଖାଦ୍ୟ ବ୍ୟବସ୍ଥା ତାଙ୍କୁ ଚିନ୍ତିତ କରିଥିଲା । ଲୋକମାନଙ୍କ ଆର୍ଥିକ ସ୍ଥିତିରେ ସୁଧାର ଆଣିବା ପାଇଁ ସେ ମହୁଗ୍ରଷ, କମ୍ପୋଷ୍ଟ ଖତ ତିଆରି, ସୂତାକଟା ଓ ଖଦୀ ବସ୍ତ୍ର ଉପରେ ଗୁରୁତ୍ୱ ଦେଉଥିଲେ । ସମୟକ୍ରମେ ଭାରତର ଦରିଦ୍ର ଜନତାଙ୍କ ପାଇଁ ତାଙ୍କର ଜୀବନ ଉତ୍ସର୍ଗୀକୃତ ହେଲା । ୧୯୩୫ରେ ଦୁଇଜଣ ବିଖ୍ୟାତ ମହିଳା ଶ୍ରୀମତୀ ସି. କୁଟନ୍ ନାୟାର କୋଚିନ୍‌ରୁ ଓ ଏଡ଼ିଥ୍ ହୋ-ମାର୍ଟିନ ଲଣ୍ଡନରୁ ଗାନ୍ଧୀଙ୍କୁ ସାକ୍ଷାତ କରିବା ପାଇଁ ଓ୍ୱାର୍ଦ୍ଧା ଆସିଲେ । ଜନ୍ମ ନିୟନ୍ତ୍ରଣ ବିଷୟରେ ଚର୍ଚ୍ଚା ହେଲା । ଶ୍ରୀମତୀ ହୋ ମାର୍ଟିନ ଗାନ୍ଧୀଙ୍କ ସହ ଯେଉଁ ଆଲୋଚନା କରିଥିଲେ ତାହାର ସଂପୂର୍ଣ୍ଣ ବିବରଣୀ 'ହରିଜନ' ପତ୍ରିକା ଫେବୃୟାରୀ ୧୯୩୫ ସଂଖ୍ୟାରେ ପ୍ରକାଶ ପାଇଥିଲା । ଏଥିରୁ ଜଣାଯାଏ ଶ୍ରୀମତୀ ହୋ-ମାର୍ଟିନ ଗାନ୍ଧୀଙ୍କ ଚିନ୍ତାଧାରାରେ କୌଣସି ପରିବର୍ତ୍ତନ ଆଣିପାରି ନଥିଲେ । ଭାରତର ମହିଳା ଓ ଶିଶୁମାନଙ୍କ ପାଇଁ ଏହା ମଙ୍ଗଳକର ନୁହେଁ ବୋଲି ଗାନ୍ଧୀ ସ୍ଥିର ନିଶ୍ଚିତ ଥିଲେ । ମାର୍ଟିନଙ୍କ ଯୁକ୍ତି ଥିଲା-ଯୌନ ବ୍ୟାପାର ଘୃଣ୍ୟ ନୁହେଁ । ଏହା ମଣିଷର ନୈସର୍ଗିକ କାର୍ଯ୍ୟ । ଆପଣଙ୍କ ଦୃଷ୍ଟିରେ ଏହି ଜୈବ ପ୍ରକ୍ରିୟା ଏକ ଉପେକ୍ଷିତ କାର୍ଯ୍ୟ । ଏପରି ଉକ୍ତି ଗାନ୍ଧୀଙ୍କୁ ଟିକିଏ ବିଚଳିତ କରିଥିଲା ।

ତା'ପରେ ସେ କହିଲେ — ସନ୍ତାନ ସୃଷ୍ଟିପାଇଁ ଏହା ସ୍ୱର୍ଗୀୟ ହୋଇପାରେ । କିନ୍ତୁ ସନ୍ତାନ କାମନା ନଥାଇ ଏହି କାର୍ଯ୍ୟ ଅତ୍ୟନ୍ତ ପୈଶାଚିକ । ସନ୍ତାନ ସୃଷ୍ଟିପାଇଁ ଯୌନ ସଂଗମ ଯେ ଏକ ସ୍ୱର୍ଗୀୟ ଅନୁଭବ ତାହା ଗାନ୍ଧୀ ପୂର୍ବରୁ କେବେ ଭାବିନଥିଲେ । ଯୌନକାମନା ଯେ କେବଳ ଯୌନ କାମନା — ଏହା ତାଙ୍କର ସୃଷ୍ଟିତତ୍ତ୍ୱ ଧାରଣାରେ ଥିଲା ବଳବତ୍ତର । ଯୌନକ୍ରିୟା ସାମୟିକ ଆବଶ୍ୟକତା । ଏହାର ଅନ୍ତରାଳରେ ରହିଛି ନିଶ୍ଚିତ ଏକ ନିନ୍ଦନୀୟ ଓ ଉଦ୍ଦେଶ୍ୟମୂଳକ କାର୍ଯ୍ୟ । ସନ୍ତାନ ଜନ୍ମ ତାର ସଂଭାବ୍ୟ ପରିଣତି; ଜୀବନଧାରାର ଏକ ସ୍ୱାଭାବିକ ଅଧ୍ୟାୟ ।

ପ୍ରଥମତଃ ଗାନ୍ଧୀ ସବୁବେଳେ ଥିଲେ ସକଳ ପ୍ରକାର ଜନ୍ମ ନିୟନ୍ତ୍ରଣର ବିରୋଧୀ । ତାଙ୍କର ଏଇ ମନୋଭାବ ଥିଲା ଅତ୍ୟନ୍ତ ରକ୍ଷଣଶୀଳ । ଭାରତର ଜନସଂଖ୍ୟା ଓ ଶିଶୁ ମୃତ୍ୟୁହାରକୁ ରୋକିବା ପାଇଁ ସ୍ୱାମୀ ଯୋଗାନନ୍ଦ ତାଙ୍କୁ ଏପରି ଏକ ବାସ୍ତବଧର୍ମୀ ପରାମର୍ଶ ଦେଇଥିଲେ । ସେ କେବଳ ଯୌନ ସଂଯମ ଉପରେ ହିଁ ଗୁରୁତ୍ୱାଆରୋପ କରିଥିଲେ । ଯେତେବେଳେ ତାଙ୍କୁ ଏହାର ନିୟନ୍ତ୍ରଣ ବିନା 'ବହୁ ସନ୍ତାନ' ସୃଷ୍ଟିର ସମ୍ଭାବନା କଥା ପଚରାଗଲା, ସେତେବେଳେ ସେ କହିଲେ — 'ସନ୍ତାନ ନ ହେବା' ବରଂ ଭଲ ।

ବର୍ତ୍ତମାନ ମାନବ ଜାତିର ଏକ ବିରାଟ ପରିବର୍ତ୍ତନ ସଂଘଟିତ ହେବାକୁ ଯାଉଛି । ଗର୍ଭ ଧାରଣର ଭୟ ନଥିଲେ ଯୌନ ସଂଗମର ପରିଣତି ଅତୀବ ଭୟାବହ ହେବ । କୁହାଯାଇପାରେ ଯୌନ ସଂଗମର ସ୍ୱାଧୀନତା ମଣିଷର 'ହସ୍ତମୈଥୁନ' ସହ ସମାନ । ଅନ୍ୟ ଅର୍ଥରେ ଏହାକୁ ଚିତ୍ତଭ୍ରଂଶ କୁହାଯାଇପାରେ । ତେଣୁ ସେ ଶ୍ରୀମତୀ ନାୟାରଙ୍କୁ କହିଲେ - ଲୋକମାନେ ପ୍ରକୃତିର ନିୟମକୁ ଅନୁସରଣ କରନ୍ତୁ । ସେହି ବିଗ୍ରହରେ ଗର୍ଭନିରୋଧକ ଦ୍ରବ୍ୟାଦି ଅପ୍ରାକୃତିକ ବାଧକରୂପେ ଗଣ୍ୟ । ଯେଉଁମାନଙ୍କର ଜନ୍ମ ମୂଷା ଛୁଆପରି ସେମାନଙ୍କର ମୃତ୍ୟୁ ମଧ୍ୟ ସେହିପରି ହେବା ସ୍ୱାଭାବିକ । ସେ ତେଣୁ ଏହାକୁ ମିଥ୍ୟା ଆଶୀର୍ବାଦ ବୋଲି କହିଲେ । ବର୍ତ୍ତମାନ ପ୍ରଶ୍ନ ହେଉଛି ଯଦି ପୁରୁଷର ଯୌନାଙ୍ଗ ନାରୀର ଯୌନାଙ୍ଗ ସହ ମିଳିତ ନ ହେଲା ତେବେ ଏସବୁର ସୃଷ୍ଟି କ'ଣ ପାଇଁ ? ଏବେ ଜନ୍ମ ନିୟନ୍ତ୍ରଣ ପ୍ରସଙ୍ଗଟିର ବିରୋଧାଭାସ ଦେଖିବା । ସନ୍ତାନ ଜନ୍ମ ଚାହୁଁ ନଥିବା ଜଣେ ବ୍ୟକ୍ତି ପକ୍ଷରେ ଏହା ଇଚ୍ଛାଧୀନ କଥା ହେବ । ଉଦ୍ଦେଶ୍ୟମୂଳକ ଭାବେ ଯଦି ଗର୍ଭ ନିରୋଧକ ସାହାଯ୍ୟରେ ଜନ୍ମ ନିୟନ୍ତ୍ରଣ କରାଯାଏ, ଯୌନ ସଂଗମ ଏକ ପବିତ୍ର ଓ ଧର୍ମୀୟ ଅନୁଷ୍ଠାନର ସମ୍ମାନ ପାଇବ ।

ଡିସେମ୍ବର ମାସରେ ଗର୍ଭନିରୋଧକ ବ୍ୟାପର ସଂପର୍କିତ କେତେଜଣ ଉତ୍ସାହୀ ବ୍ୟକ୍ତି ପୁଣି ତାଙ୍କୁ ଭେଟିଲେ । ବମ୍ବେ ମ୍ୟୁନିସିପାଲ କର୍ପୋରେସନ୍‌ର ଶ୍ରୀ ମଥୁରା ଦାସ ତ୍ରିକମଜୀ କହିଲେ - ମ୍ୟୁନିସପାଲଟି ଦ୍ୱାରା ଜନ୍ମ ନିୟନ୍ତ୍ରଣ କ୍ଲିନିକ୍ ଖୋଲିବା ବିଷୟରେ ଆମେ ଆପଣଙ୍କର ସମର୍ଥନ କାମନା କରୁଛୁ । ଗାନ୍ଧୀ ଏହାକୁ ସମର୍ଥନ କରିପାରିବେ ନାହିଁ ବୋଲି କାରଣ ସହ ଜଣାଇଦେଲେ ।

ଆମେରିକାବାସୀ ପ୍ରଖ୍ୟାତ ନାରୀ-ମୁକ୍ତି-ଆନ୍ଦୋଳନର ନେତ୍ରୀ ମାର୍ଗାରେଟ୍ ସାଙ୍ଗର୍‌ଙ୍କ ସହ ଗାନ୍ଧୀଙ୍କର ସାକ୍ଷାତ ଇତିହାସର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଘଟଣା । ସେତେବେଳେ ସେ ନାରୀମାନଙ୍କର ଅଧିକାର ଓ ଜନ୍ମ ନିୟନ୍ତ୍ରଣ ସଂପର୍କରେ ନିଜର ସ୍ୱାଧୀନ ମତ ଦେଇ ସମାଜରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ । ମାତ୍ର କିଛି ବର୍ଷ ପୂର୍ବରୁ ଏଚ୍.ଜି. ୱେଲସ୍ ତାଙ୍କୁ ସଭ୍ୟତାର ନାୟିକା ରୂପେ ଘୋଷଣା କରିଥାନ୍ତି । ଖାଲି ସେତିକି ନୁହେଁ ସେ କହୁଥିଲେ - "ମାର୍ଗାରେଟ୍‌ଙ୍କ ଆନ୍ଦୋଳନ ବିଶ୍ୱର ସବୁଠାରୁ ପ୍ରଭାବଶାଳୀ ଆନ୍ଦୋଳନ" ।

୧୯୩୫ ମସିହାରେ ସେ ଗାନ୍ଧୀଙ୍କ ଜନ୍ମ ନିୟନ୍ତ୍ରଣ ବିରୋଧି ଲେଖାର ପ୍ରତିବାଦ ଜଣାଇଥିଲେ । ସେତେବେଳେ ଗାନ୍ଧୀ ଅତ୍ୟନ୍ତ ସହୃଦୟତା ସହ ବିଷୟଟିର ପ୍ରାଧାନ୍ୟ ଉପରେ ଗୁରୁତ୍ୱ ଦେଇଥିଲେ । ସାଙ୍ଗର୍ ଜାଣିଥିଲେ ଯେ ସେ ଗାନ୍ଧୀଙ୍କୁ ବୁଝାଇ ପାରିବେ ନାହିଁ । ମାତ୍ର ନିଜର ସଂଗ୍ରାମ ପାଇଁ ତାଙ୍କୁ କିଛି ହେଲେ ସମର୍ଥନ ଯୋଗାଡ଼ କରିବାକୁ ହେବ । ଗାନ୍ଧୀଙ୍କ ସହ ସାକ୍ଷାତକାର ଅଭିଳଷିତ କାର୍ଯ୍ୟକ୍ରମର ଗୌରବ ବୃଦ୍ଧି କରିବ — ଏହା ଥିଲା ତାଙ୍କର ଅନ୍ୟତମ ଲକ୍ଷ୍ୟ ।

ଗାନ୍ଧୀଙ୍କ ଭଳି ସାଙ୍ଗର୍ ଥିଲେ ଜଣେ ଶାନ୍ତିକାମୀ କିନ୍ତୁ ବିପ୍ଳବିନୀ ଓ ଚରମପନ୍ଥୀ । ତାଙ୍କର ରାଜନୈତିକ ସଂପୃକ୍ତି ଥିଲା ଗାନ୍ଧୀଙ୍କଠାରୁ ସ୍ୱତନ୍ତ୍ର । ଧାର୍ମିକ ବିଶ୍ୱାସ ତାଙ୍କୁ ଆଦୌ ବିଚଳିତ କରିନଥିଲା । ସେ ଧର୍ମଯାଜକ-ବିରୋଧୀ ନୀତି ପୋଷଣ କରିବାକୁ କୁଣ୍ଠିତ ନଥିଲେ । ତାଙ୍କର ବାପା ଥିଲେ ଜଣେ ଆୟର୍ଲାଣ୍ଡ ଜନ୍ମିତ ଆମେରିକାନ୍ । ଧାର୍ମିକ ଅସହିଷ୍ଣୁତା ସହିତ ତାଙ୍କୁ ଚିରକାଳ ସଂଗ୍ରାମ କରିବାକୁ ପଡ଼ିଥିଲା । ଜନ୍ମ ନିୟନ୍ତ୍ରଣ ବିଷୟରେ ରୋମୀୟ କାଥଲିକ୍ ଗୀର୍ଜା ଥିଲା ତାଙ୍କର ଶତ୍ରୁ ଓ ବିରୋଧୀ । ସେ କହୁଥିଲେ - 'ଗୀର୍ଜାର ମତ ସବୁବେଳେ ବର୍ବର ଓ ପାଶବିକ' । ମଣିଷ ଜୀବନ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଥିଲା । ତାହା ସେ ଧାର୍ମିକ ସୂତ୍ରରୁ ପାଇ ନଥିଲେ । ନିର୍ଯ୍ୟାତିତ ମହିଳାମାନଙ୍କ ସେବା ଓ ଯତ୍ନର ଅନୁଭବ ତାଙ୍କୁ ଏହି ଭାବନାରେ ଦୀକ୍ଷିତ କରିଥିଲା ।

ସାଙ୍ଗର୍‌ଙ୍କ ରାଜନୈତିକ ବିଶ୍ୱାସ ଥିଲା ନ୍ୟୁୟର୍କର ଚରମପନ୍ଥୀ ସମାଜବାଦୀ ଆନ୍ଦୋଳନ ସହ ସଂବଧିତ । ଏହା ପ୍ରଥମ ବିଶ୍ୱଯୁଦ୍ଧ ପୂର୍ବର କଥା । ତାଙ୍କର ଘର ଥିଲା ଉଦାରବାଦୀ, ସଂତ୍ରାଶବାଦୀ ଓ ସମାଜବାଦୀମାନଙ୍କର ଆଡ୍‌ଡ଼ା । ସେ କାଳର ବିଖ୍ୟାତ ବ୍ୟକ୍ତି ଯଥା ଏମା ଗୋଲ୍ଡମ୍ୟାନ୍‌ଙ୍କ ଭଳି ସଂତ୍ରାସବାଦୀ, ଜନ୍ ଋଡ୍‌ଙ୍କ ଭଳି ଲେଖକ ଏବଂ ବିଲ୍ ହେରଡ୍ ଭଳି ଶ୍ରମିକ ସଂଗଠକଙ୍କ ସହ ତାଙ୍କର ନିବିଡ଼ ସଂପର୍କ ଥିଲା । ସେ ଗୋଲ୍ଡମ୍ୟାନଙ୍କ ନାରୀର ଯୌନମୁକ୍ତି ଓ ରାଜନୈତିକ ସଶକ୍ତିକରଣ ଭଳି ବୈପ୍ଲବିକ ଦର୍ଶନ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥିଲେ । ଗୋଲ୍ଡମ୍ୟାନ ପ୍ରଥମେ ଘୋଷଣା କରିଥିଲେ ଯେ ନାରୀର ଶରୀର ଉପରେ ରହିଛି ତାର ପୂର୍ଣ୍ଣ ଅଧିକାର । ପୁଣି ତାର ବ୍ୟକ୍ତିଗତ ମୁକ୍ତି ଓ ଅର୍ଥନୈତିକ, ସାମାଜିକ ନ୍ୟାୟ ସହିତ ଥିବା ସଂପର୍କ କଥା ସେ ସାଙ୍ଗର୍‌ଙ୍କୁ ବୁଝାଇଦେଇଥିଲେ । ନାରୀମାନଙ୍କ ଭୋଟ ସଂଗ୍ରହ ପାଇଁ ସମାଜବାଦୀ ଦଳ ସାଙ୍ଗର୍‌ଙ୍କୁ ଡାକିଥିଲା । କିନ୍ତୁ ସେ ଭାବିଲେ ସୁଦୂର ଦୃଷ୍ଟିରୁ ଏହା ଯଥାର୍ଥ ନୁହେଁ । ଗୋଲ୍ଡମ୍ୟାନଙ୍କ ଭଳି ସେ ଭାବୁଥିଲେ ଯେ କେବଳ ସ୍ୱୀକୃତିପ୍ରାପ୍ତ ସଂସ୍ଥା ଯଥେଷ୍ଟ ନୁହେଁ । ଏଥିପାଇଁ ସାମାଜିକ ପରିବର୍ତ୍ତନ ମଧ୍ୟ ଆବଶ୍ୟକ । ସାଙ୍ଗର୍ ଚାହିଁଥିଲେ —ନୂତନ ଆନ୍ଦୋଳନ ମାଧ୍ୟମରେ ନାରୀର ବ୍ୟକ୍ତିଗତ ଓ ସାମାଜିକ ମୁକ୍ତି ସଂଭବ ।

ଗାନ୍ଧୀଙ୍କ ଭଳି ସାଙ୍ଗର ଗଣ ଆନ୍ଦୋଳନର ସହାୟତା ନେଇ ନଥିଲେ । ତା ପରିବର୍ତ୍ତେ ସେ ବିକଳ୍ପ ସଂଗଠନ ପାଇଁ ଯତ୍ନଶୀଳ ଥିଲେ । ସେ 'ଆମେରିକାନ୍ ଜନ୍ମନିୟନ୍ତ୍ରଣ ଲିଗ୍' ସ୍ଥାପନ କଲେ ଏବଂ ବହୁ ସଂଖ୍ୟକ ଜନ୍ମ ନିୟନ୍ତ୍ରଣ କ୍ଲିନିକ୍ ଖୋଲିଲେ । ପ୍ରଥମ କ୍ଲିନିକ୍ ବ୍ରୁକ୍‌ଲିନ୍‌ଠାରେ ଖୋଲିଥିଲା ୧୯୧୬ ମସିହାରେ । ସେଥିପାଇଁ ତାଙ୍କୁ ଜେଲ୍‌ଯିବାକୁ ପଡ଼ିଥିଲା । ୧୯୧୭ ମସିହାରେ ତାର ବିଚାର ହେଲା । ଏହା ସେତେବେଳର ବିଖ୍ୟାତ ମକଦ୍ଦମା ଭାବରେ ପ୍ରସିଦ୍ଧି ପାଇଥିଲା । ୧୯୩୦ବେଳକୁ ସମଗ୍ର ଦେଶରେ ୩୦୦କ୍ଲିନିକ୍ ଖୋଲି ଯାଇଥିଲା । ଜନ୍ମ ନିୟନ୍ତ୍ରଣ ବ୍ୟାପାରରେ ସ୍ଥାନୀୟ ଲୋକଙ୍କ ମଧ୍ୟରେ ବିପୁଳ ଉତ୍ସାହ ଦେଖିବାକୁ ମିଳିଥିଲା । ତାଙ୍କ ପ୍ରଚେଷ୍ଟାରେ ପରେ ପରେ ଜାପାନ ଓ ଭାରତରେ କ୍ଲିନିକ୍‌ମାନ ଖୋଲିଲା । ଏହି କ୍ଲିନିକ୍‌ମାନଙ୍କ ଜରିଆରେ ସାଙ୍ଗର୍ ନୂଆ ପ୍ରକାର ସାମାଜିକ ସଂଗଠନ ପ୍ରତିଷ୍ଠା କରିଥିଲେ । ନାରୀମାନଙ୍କ ମୁକ୍ତି ଓ ସଶକ୍ତିକରଣ ପାଇଁ ତାଙ୍କର ଏହି ଉଦ୍ୟମ ବାସ୍ତବିକ ଅବିସ୍ମରଣୀୟ ।

ସାଙ୍ଗର୍ ଥିଲେ ଜଣେ ଜନ୍ମ-ନିୟନ୍ତ୍ରଣ ସପକ୍ଷବାଦୀ ଉଗ୍ର ମତାବଲମ୍ବୀ ମହିଳା । ଗ୍ରାମୀଣ ଭାରତୀୟ ନାରୀମାନଙ୍କୁ ବହୁ ସନ୍ତାନ ଜନ୍ମର ପୀଡ଼ାରୁ ଉଦ୍ଧାର

କରିବା ପାଇଁ ସେ ଥିଲେ ସଂକଳ୍ପବଦ୍ଧ । ଯେତେ ବାଧାବିଘ୍ନ ଆସୁ ପଛେ ସେ ଏହି ସମସ୍ୟା ସମାଧାନର ବାଟ ଖୋଜୁଥିଲେ । ୧୯୧୬ରେ ଜନ୍ମ-ନିୟନ୍ତ୍ରଣ କ୍ଲିନିକ୍ ଖୋଲିବା ଅପରାଧରେ ତାଙ୍କୁ ଜେଲ ଯିବାକୁ ପଡ଼ିଥିଲା । ଏହାପରେ ଆନ୍ଦୋଳନ ଜୋର ଧରିଲା । ବୈବାହିକ ଜୀବନର ସୌନ୍ଦର୍ଯ୍ୟ ଓ ପବିତ୍ରତା ଉପରେ ଗୁରୁତ୍ୱ ଦେଇ ସେ ପ୍ରଚାର ଚଳାଇଥିଲେ । ଏତିକିବେଳେ ସନ୍ତାନ ସୃଷ୍ଟି କ୍ଷେତ୍ରରେ 'ପିତାମାତାଙ୍କ ବିଧିବଦ୍ଧ ଦାୟିତ୍ୱ' (Planned Parenthood)ର ପରିକଳ୍ପନା ଜନ୍ମଲାଭ କଲା । ଏହା ଜନସାଧାରଣଙ୍କ ସମର୍ଥନ ପାଇଲା । ବିବାହ ଅନୁଷ୍ଠାନର ଦୃଢ଼ତା ଓ ମର୍ଯ୍ୟାଦା ବଢ଼ିଲା । ଠିକ୍ ଏତିକିବେଳେ ସେ ଅଖିଳ ଭାରତ ମହିଳା ସମ୍ମିଳନୀର ନିମନ୍ତ୍ରଣ ପାଇଲେ । ସଂଗେ ସଂଗେ ସେ ଗାନ୍ଧୀଙ୍କୁ ଚିଠି ଲେଖିଲେ । ଗାନ୍ଧୀ ମଧ୍ୟ ରାଜି ହୋଇଗଲେ । ଏଥର ସାଙ୍ଗର୍‌ଙ୍କ ସହ ଦେଖାରେ ଦୁଇ ପ୍ରମୁଖ ନେତା ପରସ୍ପର ମୁହାଁମୁହିଁ ହେବାକୁ ପ୍ରସ୍ତୁତ ହେଲେ । ବିଂଶ ଶତାବ୍ଦୀର ସାମାଜିକ ପ୍ରଗତି କ୍ଷେତ୍ରରେ ଏହାଠାରୁ ବଳି ବଡ଼ ଘଟଣା ଆଉ କ'ଣ ହୋଇପାରେ ?

ସାମାଜିକ ନ୍ୟାୟ କ୍ଷେତ୍ରରେ ଗାନ୍ଧୀ ଓ ସାଙ୍ଗର୍‌ଙ୍କ ବିପୁଳ ଅବଦାନକୁ କେହି ଅସ୍ୱୀକାର କରିପାରିବେ ନାହିଁ । ମାତ୍ର ସେମାନଙ୍କ ମଧ୍ୟରେ ଥିଲା ନାରୀ ଓ ଯୌନତା ବିଷୟରେ ବିଚାରକୁ ନେଇ ବିଶାଳ ପ୍ରଭେଦ । ଗାନ୍ଧୀ ଥିଲେ ବିପ୍ଳବୀ କିନ୍ତୁ ଜଣେ ସନ୍ଥ । ସେ ନାରୀମାନଙ୍କ ଘର ଓ ସଂଧାବନ୍ଧା ଥିବା କାର୍ଯ୍ୟର ସମର୍ଥକ ଥିଲେ । ମାତ୍ର ସାଙ୍ଗର୍, ନାରୀ ମୁକ୍ତିର କଥା କହୁଥିଲେ । ତାଙ୍କ ମତରେ - ବାରମ୍ବାର ସନ୍ତାନ ଜନ୍ମର ଅତ୍ୟାଚାରରୁ ମୁକ୍ତି ଉପରେ ସାମାଜିକ ପ୍ରଗତି ନିର୍ଭରଶୀଳ । ଅଧିକ ଜନସଂଖ୍ୟା ହିଁ ଦାରିଦ୍ର୍ୟର କାରଣ । ଏହା ମଣିଷ ପାଇଁ ସକଳ ଦୁଃଖ ଓ ନିର୍ଯ୍ୟାତନା ଡାକିଆଣେ । ଯୁଦ୍ଧ ପାଇଁ ସବୁ ସଳବାଳ ମୂଳରେ ରହିଛି ଏହି ଜନସଂଖ୍ୟା । ସୁତରାଂ ଜନସଂଖ୍ୟା ନିୟନ୍ତ୍ରଣ ହିଁ ଏକାନ୍ତ ଆବଶ୍ୟକତା । ଏହା ମୂଳରେ ରହିଛି ନାରୀ ସ୍ୱାଧୀନତା ଓ ମାନବ ସଭ୍ୟତାର ବିକାଶ ।

କିନ୍ତୁ ଗାନ୍ଧୀ ଭାବୁଥିଲେ ଜନ୍ମ ନିୟନ୍ତ୍ରଣ ଏକ ପଶ୍ଚିମୀ ଚିନ୍ତାଜନିତ ପାପ ଛଡ଼ା କିଛି ନୁହେଁ । ଏହା ସହିତ ଯୌନ ମୁକ୍ତି ଓ ଆମ ସ୍ୱାଧୀନତା ସଂଗ୍ରାମର କୌଣସି ସଂପର୍କ ନାହିଁ । ତାଙ୍କ ଦୃଷ୍ଟିରେ —ଯୌନ ସଂଯମ ହିଁ ଏହାର ଏକମାତ୍ର ସମାଧାନର ପନ୍ଥା । ସଂଯମ ବଳରେ ଭାରତ ନିଶ୍ଚୟ ଅଗ୍ରଗତି କରିବ ଓ ଦେଶର ଜନସଂଖ୍ୟା ଅଭିବୃଦ୍ଧି ମଧ୍ୟ ଅଟକାଯାଇ ପାରିବ ।

ସାଙ୍ଗର୍ ଗାନ୍ଧୀଙ୍କର ଜନ୍ମ ନିୟନ୍ତ୍ରଣ ଓ ଯୌନତା ସଂପର୍କିତ ପାରଂପରିକ ଚିନ୍ତାଧାରା ବିଷୟରେ ଅବଗତ ଥିଲେ । କିନ୍ତୁ ଭାରତ ଆସିବାର କାରଣ ଥିଲା - ଗାନ୍ଧୀଙ୍କ ସହିତ ସେ ତାଙ୍କର ମନକଥା ଖୋଲାଖୋଲି ଆଲୋଚନା କରିପାରିବେ । ଏବେ ଗାନ୍ଧୀ କହିଲେ - "ମୁଁ ଯୌନ ଜୀବନରୁ ମୁକ୍ତି ନେଇଛି । ମୋର ନିଜର ବିବାହ ସୁଦୃଢ଼ ହୋଇଛି" । ପୁଣି କହିଲେ - "ଦୈହିକ ସୁଖପାଇଁ ଯୌନକ୍ରିୟା କରାଯାଏ । ତାହା ଚକୋଲେଟ୍ ଖାଇବା ଭଳି ସୁଖକର, କିନ୍ତୁ ଏଥିରେ ଖାଦ୍ୟର ପୁଷ୍ଟିକର ଉପାଦନ ନଥାଏ" । ସାଙ୍ଗର୍‌ଙ୍କ ପ୍ରତି ଏହାଥିଲା ଗାନ୍ଧୀଙ୍କର ପରୋକ୍ଷ ଉପହାସ । ସାଙ୍ଗର୍ ସଂଗେ ସଂଗେ ପ୍ରତିବାଦ କରି କହିଲେ — ବୈବାହିକ ଯୌନ ସଂପର୍କ ପ୍ରେମ ଓ କାମର ଆଧାର ଉପରେ ପ୍ରତିଷ୍ଠିତ । ଅବଶ୍ୟ ଗାନ୍ଧୀଙ୍କ ଏକାଦଶ ବ୍ରତର 'ଅସ୍ୱାଦ' ଧାରଣା ସହିତ ସାଙ୍ଗର୍ ସୁପରିଚିତ ନଥିଲେ । ତେଣୁ ତାଙ୍କୁ ଏହି ଉତ୍ତର ସନ୍ତୋଷଜନକ ମନେ ହେଲାନାହିଁ । ମାତ୍ର ଗାନ୍ଧୀ ସାକ୍ଷାତକାର ପାଇଁ ପ୍ରସ୍ତୁତ ହୋଇ ଆସିଥିଲେ । କିଛି ନୂଆକଥା କହିବେ ବୋଲି ସେ ସ୍ଥିର କରିଥିଲେ । ଗର୍ଭଧାରଣକୁ ସୁନିର୍ଦ୍ଦିଷ୍ଟ କରିବା ପାଇଁ ଯୌନକ୍ରିୟାର ନିୟନ୍ତ୍ରିତ ବିଧି (rythm method) ସଂପର୍କରେ ପଢ଼ିବାକୁ ଦିଆଯାଇଥିବା 'ସୂଚନା ପୁସ୍ତକ' (hand book) ସହ ତାଙ୍କର ପରିଚୟ ଥିଲା । ଉପରୋକ୍ତ ନିୟନ୍ତ୍ରଣବିଧି-—ବିଷୟକ ଚର୍ଚ୍ଚାରେ ଯୋଗଦେଇ ଗାନ୍ଧୀ ସମସ୍ତଙ୍କୁ ଚକିତ କରିଦେଲେ । କହିଲେ - ସାଙ୍ଗର୍‌ଙ୍କ ମତ ଆଂଶିକ ଅନୁମୋଦନ ଯୋଗ୍ୟ । କାରଣ ସେ ଅନୁମାନ କରିଥିଲେ ଯେ ଏହା ଆତ୍ମସଂଯମ ଓ ଜନ୍ମ ନିୟନ୍ତ୍ରଣ ଦିଗରେ କିଂଚିତ୍ ମାତ୍ରାରେ ସହାୟକ ହୋଇପାରେ (C.W/62, P/54) । ସାଙ୍ଗର୍ ଗାନ୍ଧୀଙ୍କ ଭଳି ଗଣ ସତ୍ୟାଗ୍ରହ ବା ଆଇନ ଅମାନ୍ୟ ଆନ୍ଦୋଳନ କରିବାକୁ ଚାହିଁ ନଥିଲେ । ତାଙ୍କର ଉଦ୍ଦେଶ୍ୟମୂଳକ ଆଇନ ଅମାନ୍ୟ ରାଷ୍ଟ୍ରୀୟ ଜୀବନକୁ ଆନ୍ଦୋଳିତ କରିଥିଲା । ଫଳରେ ଦେଶର ରାଜନୀତିରେ ତାଙ୍କର ସ୍ଥାନ ନିର୍ଦ୍ଦିଷ୍ଟ ହେବାକୁ ଲାଗିଲା । ସାଙ୍ଗର୍ ଓ ତାଙ୍କ ଭଉଣୀ ଏଥେଲ୍ ବିର୍ଣ୍ଣେ ୧୯୧୬ ମସିହାରେ ଆଇନ ଭଂଗ ଅଭିଯୋଗରେ ବନ୍ଦୀ ହୋଇଥିଲେ । ନିନ୍ଦନୀୟ 'କଷ୍ଟମ୍ସ' ଆଇନ ବିରୋଧରେ ସେ ଦୁହେଁ ସ୍ୱର ଉତ୍ତୋଳନ କରିଥିଲେ । ନିୟମ ଥିଲା କେହି ଜନ୍ମନିୟନ୍ତ୍ରଣ ସଂପର୍କିତ ଖବର ପ୍ରସାର ଓ ପ୍ରଚାର କରି ପାରିବେ ନାହିଁ । ବିର୍ଣ୍ଣେଙ୍କ ଅପରାଧ ଥିଲା ନ୍ୟୁୟର୍କ ଟାଇମସ୍‌ର ପ୍ରଥମ ପୃଷ୍ଠାର ଖବର । ଦୁଇ ଭଉଣୀଙ୍କ କୋର୍ଟ ବିଚାର ଏବଂ ବିର୍ଣ୍ଣେଙ୍କ ୧୦ ଦିନିଆ ଅନଶନ । ଏହି ଖବର ପ୍ରଚାରିତ ହେବା ଫଳରେ ସାରା ଦେଶରେ ଚହଳ ପଡ଼ିଯାଇଥିଲା । ଫଳରେ ଜନ୍ମ ନିୟନ୍ତ୍ରଣ ପ୍ରସଙ୍ଗ ବିଶେଷ ଚର୍ଚ୍ଚାର ବିଷୟ

ପାଇଟି ଯାଉଥିଲା । ଅନ୍ୟମାନଙ୍କ ମଧ୍ୟରେ ନ୍ୟୁୟର୍କ ଟାଇମସ୍‌ର ଜଣେ ତରୁଣ ସଂବାଦଦାତା ଡରୋଥି ଡେ'ଙ୍କର ଭୂମିକା ଥିଲା ବିଶେଷ ଗୁରୁତ୍ୱପୂରର୍ଣ୍ଣ ।

ସାଙ୍ଗର୍‌ଙ୍କ ଜୀବନୀ ଲେଖକ ଏଲେନ୍ ଚେସଲର ଲେଖିଛନ୍ତି - ଲୋକ ସଂପର୍କ ପ୍ରତିଷ୍ଠା କ୍ଷେତ୍ରରେ ତାଙ୍କର ଥିଲା ସ୍ୱାଭାବିକ ପ୍ରତିଭା । ସେ ଜାଣିଥିଲେ - ଜନ୍ମ ନିୟନ୍ତ୍ରଣ ପ୍ରସ୍ତରର ଆଭିମୁଖ୍ୟ ସାଧାରଣ ଜନତାଙ୍କ ଉପରେ ଗଭୀର ପ୍ରଭାବ ପକାଇଛି । ଲୋକପ୍ରିୟ ଗଣମାଧ୍ୟମରେ ସେ ସ୍ୱାଭାବିକ ଭାବେ ଉଚ୍ଚସ୍ଥାନ ଅଧିକାର କରିଛନ୍ତି । ଲୋକସଂପର୍କର ମୂଲ୍ୟ ସେ ଭଲଭାବେ ବୁଝିଥିବାରୁ ପ୍ରଚଳିତ ରାଜନୈତିକ ସଂଗଠନ ଉପରେ ବିଶେଷ ଗୁରୁତ୍ୱ ଦେଉନଥିଲେ । ତେଣୁ ସର୍ବସାଧାରଣଙ୍କ ନିକଟରେ ନିଜର ବ୍ୟକ୍ତିତ୍ୱ ପ୍ରତିଷ୍ଠା କରିବାରେ ଅଧିକ ଯତ୍ନଶୀଳ ଥିଲେ । ଏ କ୍ଷେତ୍ରରେ ସେ ଗାନ୍ଧୀଙ୍କ ସହ ତୁଳନୀୟ । ୧୯୩୫ ମସିହାରେ ଯେତେବେଳେ ଦୁହିଁଙ୍କର ଦେଖାହେଲା ସେତେବେଳେ ଉଭୟଙ୍କର ବ୍ୟକ୍ତିଗତ ଷ୍ଟେନୋଗ୍ରାଫରମାନେ ଅପେକ୍ଷାରତ ବିଶ୍ୱପ୍ରେସ୍ ପାଇଁ ଟିକିନିଖି କଥୋପକଥନର ବିବରଣୀ ଲିପିବଦ୍ଧ କରିଥିଲେ । ସେମାନଙ୍କ ଯୁକ୍ତିତର୍କ ଯେତିକି ପରିମାଣରେ ରାଜନୈତିକ ନାଟକ ଥିଲା ସେତିକି ପରିମାଣରେ ଥିଲା ବୌଦ୍ଧିକ ଆଳାପ । ଉଭୟ ଜାଣିଥିଲେ ଯେ ଦୁହିଁଙ୍କ ଆଲୋଚନାର ପ୍ରତ୍ୟେକ ବାକ୍ୟ ଗାନ୍ଧୀଙ୍କ ଆଶ୍ରମର ପରିଧି ବାହାରକୁ ଯିବ ଓ ସାରା ବିଶ୍ୱ ନିକଟରେ ପହଞ୍ଚିବ ।

## ପ୍ରେମ ଓ ଯୌନକାମନା :

ସନ୍ତାନ ଜନ୍ମର ସ୍ୱାଧୀନତା ଠାରୁ ଆରମ୍ଭ କରି ଭାରତର ମୁକ୍ତି ସଂଗ୍ରାମ ପର୍ଯ୍ୟନ୍ତ ବିଷୟ ସାଙ୍ଗର୍‌ଙ୍କର ଆଲୋଚନାର ବିଷୟବସ୍ତୁ ଥିଲା । ସେ କହୁଥିଲେ - "ଯେ ପର୍ଯ୍ୟନ୍ତ ନାରୀଜାତି ସନ୍ତାନ ଜନ୍ମର ନିୟନ୍ତ୍ରଣ ଅଧିକାର ପାଉ ନାହାନ୍ତି ସେ ପର୍ଯ୍ୟନ୍ତ କୌଣସି ଦେଶ ସ୍ୱାଧୀନ ହୋଇପାରିବ ନାହିଁ" । ନିଜ ଜୀବନର ଅନୁଭୂତି ଆଧାରରେ ତାଙ୍କର ଯୁକ୍ତି ହେଲା - ନ୍ୟୁୟର୍କର ଅଧିବାସୀ ମହିଳା ହୁଅନ୍ତୁ ବା ବମ୍ବେର ବସ୍ତିବାସୀ ମହିଳା ହୁଅନ୍ତୁ ବାରମ୍ବାର ସନ୍ତାନ ଧାରଣ ଓ ପାଳନର ବୋଝରୁ ତାଙ୍କୁ ମୁକ୍ତ କରିବାକୁ ପଡ଼ିବ । ଯୁକ୍ତରାଷ୍ଟ୍ର ଓ ୟୁରୋପରେ ଜନ୍ମ ନିୟନ୍ତ୍ରଣ କ୍ଲିନିକ୍ ଗୁଡ଼ିକର ସଫଳତା ସଂପର୍କରେ ସେ ଗାନ୍ଧୀଙ୍କୁ ବୁଝାଉଥିଲେ । ନାରୀମାନଙ୍କର ସମୃଦ୍ଧି ଓ ଆତ୍ମବିଶ୍ୱାସ ପୁଷ୍ଟିପାଇଁ ଏହି ସମସ୍ୟାର ସମାଧାନ

ଆବଶ୍ୟକ । ଜନସଂଖ୍ୟାକୁ ସୀମିତ ରଖିବା ସପକ୍ଷରେ ଗାନ୍ଧୀ ଏକମତ ହୋଇଥିଲେ ହେଁ ଅନାବଶ୍ୟକ ଗର୍ଭଧାରଣକୁ ପ୍ରତିହତ କରିବାପାଇଁ ଯୌନ ସଂଯମର ଆବଶ୍ୟକତା ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ଗାନ୍ଧୀ କହିଥିଲେ - "ଭାରତରେ ଜନ୍ମ ନିୟନ୍ତ୍ରଣ ସହଜ ହେବ ଯଦି ନାରୀମାନେ ତାଙ୍କର ସଂଭୋଗକାମୀ ସ୍ୱାମୀମାନଙ୍କୁ ନାସ୍ତିବାଣୀ ଶୁଣାଇବେ ।" ସେ ଆହୁରି କହିଥିଲେ - "ଯଦି ନାରୀମାନେ ସନ୍ତାନ ଚାହୁଁନାହାନ୍ତି ସେମାନେ ସ୍ୱାମୀମାନଙ୍କର ପ୍ରତିରୋଧ କରିବା ଶିଖନ୍ତୁ" । ସାଙ୍ଗର୍ ଗାନ୍ଧୀଙ୍କୁ ପଚାରିଲେ "କ'ଣ ଭାରତର ନାରୀମାନେ ବୈବାହିକ ଅସହଯୋଗ ଆନ୍ଦୋଳନରେ ଯୋଗଦେବା ଆପଣ ଚାହାଁନ୍ତି" ? ଉତ୍ତରରେ ଗାନ୍ଧୀ କହିଲେ- 'ହଁ, ମୁଁ ସେଇଆ ଚାହେଁ' । 'ଏପରି କଥା ଆଦୌ ସଂଭବ ନୁହେଁ' - ସାଙ୍ଗର୍ ପ୍ରତିବାଦ କଲେ । ସେ କହିଲେ - "ଏହାର ଅର୍ଥ ଘର ଭିତରେ ବିପ୍ଳବ ପକ୍ଷାନ୍ତରେ ଛାଡ଼ପତ୍ର ପାଇଁ ବାଟ ସୁଗମ କରିବ" । ଗାନ୍ଧୀ ଏକଥାରେ କାନ ଦେଲେ ନାହିଁ । କିନ୍ତୁ କହିଲେ - "ନାରୀ ଯଦି ନାଁ କରେ ତାହେଲେ ସ୍ୱାମୀ ଆଡୁ କୌଣସି ଚିନ୍ତା ସୃଷ୍ଟି ହେବ ନାହିଁ ବା କିଛି ବିଭ୍ରାଟ ହେବନାହିଁ ।"

ଜନ୍ମ ନିୟନ୍ତ୍ରଣ ବିଷୟରେ ଗାନ୍ଧୀଙ୍କର ଏପରି ବକ୍ତବ୍ୟ ଥିଲା ଏକାନ୍ତ ଆଦର୍ଶବାଦୀ । କିନ୍ତୁ ନାରୀର ଗର୍ଭଧାରଣ କ୍ଷମତା ଉପରେ ଅଙ୍କୁଶ ଲଗାଇବା କ୍ଷେତ୍ରରେ ଦୁହେଁ ଥିଲେ ଏକମତ । ଗାନ୍ଧୀ ଚାହୁଁଥିଲେ - ପୁରୁଷ ଓ ନାରୀ ପ୍ରତ୍ୟେକ ଯୌନ ଶୃଙ୍ଖଳାର ଅନ୍ତର୍ଭୁକ୍ତ ହୁଅନ୍ତୁ ଓ ଏ କ୍ଷେତ୍ରରେ ଅଧିକ ଦାୟିତ୍ୱ ବହନ କରନ୍ତୁ । ଅର୍ଥାତ୍ ନାରୀଟିଏ ନାଁ କହି ବୈବାହିକ ଜୀବନର ସ୍ୱାଭାବିକତା ଓ ଆକାଂକ୍ଷାକୁ ପ୍ରତିରୋଧ କରୁ । ନାରୀର ମଧ୍ୟ ଯୌନ କାମନା ଅଛି ଓ ନିଜସ୍ୱ ଆବଶ୍ୟକତା ଅଛି - ଏକଥା ଗାନ୍ଧୀ ବିଶ୍ୱାସ କରୁ ନଥିଲେ । "ସ୍ୱାମୀମାନଙ୍କ ଭଳି ନାରୀମାନେ ଦୈହିକ ମିଳନ ଚାହାଁନ୍ତି" - ସାଙ୍ଗର୍ ଏକଥା ଗାନ୍ଧୀଙ୍କୁ ବୁଝାଇଥିଲେ କିନ୍ତୁ ଗାନ୍ଧୀ ଥିଲେ ଅବିଚଳିତ । ସେ ବିଶ୍ୱାସ କରୁଥିଲେ ଯେ ଯୌନ ବ୍ୟାପାରରେ ନାରୀର କିଛି କାମନା ନାହିଁ । ତେଣୁ ଯୌନ ସଂଗମ ପାଇଁ ସ୍ୱାମୀଙ୍କୁ ନାଁ କରିବା ହିଁ ଯଥେଷ୍ଟ ।

ସାଙ୍ଗର୍ ବୁଝାଇବାକୁ ଚାହୁଁଥିଲେ ଯେ ପ୍ରେମ ପ୍ରକ୍ରିୟା ଦୁଇ ବୟସ୍କ ବ୍ୟକ୍ତିଙ୍କର ସହମତି ସମ୍ମତ ସୁସ୍ଥ ଓ ଆଧ୍ୟାତ୍ମିକ ଅନୁଭବ । "ଗାନ୍ଧୀ ଆପଣ କ'ଣ ପ୍ରେମ ଓ ଯୌନ କାମନା ଭିତରେ ଥିବା ପାର୍ଥକ୍ୟ ବୁଝିପାରୁନାହାନ୍ତି ?" ଗାନ୍ଧୀ ଦୁଇଟି ମଧ୍ୟରେ ଥିବା ପାର୍ଥକ୍ୟ ମାନୁଥିଲେ । କିନ୍ତୁ ସେ ବିଶ୍ୱାସ କରୁଥିଲେ - 'ଏହା ପଶୁ ପ୍ରବୃତ୍ତି ଛଡ଼ା ଆଉ କିଛି ନୁହେଁ' । ତାଙ୍କ ଭାଷାରେ - "ପ୍ରେମକୁ ଯେତେବେଳେ ଆମ ଯୌନ ସନ୍ତୋଷ ଅର୍ଥରେ ଗ୍ରହଣ କରାଯାଏ, ସେତେବେଳେ ତାହା କାମନାରେ ପରିଣତ ହୋଇଯାଏ ।" ଏହା ଠିକ୍ ଖାଦ୍ୟ ଗ୍ରହଣ କଲାଭଳି । ଯେତେବେଳେ ଖାଦ୍ୟ ଜିହ୍ୱା ଲାଳସା ପାଇଁ ଗ୍ରହଣ କରାଯାଏ ତାହା କାମନା ପାଲଟିଯାଏ । ସାଙ୍ଗର୍ ଏହି ମତକୁ ଦୃଢ଼ତାର ସହ ଅସ୍ୱୀକାର କରିଥିଲେ । ସେ କହିଥିଲେ - "ମିଷ୍ଟର ଗାନ୍ଧୀ ଏହା ଏକ ଦୁର୍ବଳ ଯୁକ୍ତି । ଯୌନ ସଂଭୋଗ ଅତ୍ୟନ୍ତ ସମ୍ମାନଜନକ, ବିଶ୍ୱର ସମ୍ମତ ଓ ଶକ୍ତିଶାଳୀ ପ୍ରକ୍ରିୟା । ଏହା ଦୁହିଁଙ୍କୁ ଏକ କରିଦିଏ । ଦୁହିଁଙ୍କ ମଧ୍ୟରେ ସଂପୂର୍ଣ୍ଣତା ଆଣେ । ପରସ୍ପର ବୁଝମଣାକୁ ସୂକ୍ଷ୍ମତର କରେ ଏବଂ ଆଧ୍ୟାତ୍ମିକ ସଂପର୍କ ସୁଦୃଢ଼ କରେ ।" ସାଙ୍ଗର୍‌ଙ୍କ ମତରେ - "ଦୈହିକ ପ୍ରେମ କ୍ରମେ ଉଚ୍ଚତର ଚେତନା ଦିଗରେ ବିବର୍ତ୍ତିତ ହୁଏ । ଏହା ଈଶ୍ୱର ପ୍ରାପ୍ତିର ମାର୍ଗ ସଦୃଶ ।" ଯେତେବେଳେ ଏହି ପ୍ରେମ ବିଶ୍ୱସ୍ତ ହୁଏ, ତାହା ସୁଖଦାୟୀ ହୁଏ । ଯେତେବେଳେ ଏହା ପରସ୍ପର ସନ୍ତୋଷ-ବିଧାୟୀ ହୁଏ, ସେତେବେଳେ ଏହା ଅଲୌକିକ ଆନନ୍ଦ ଅନୁଭବରେ ପରିଣତ ହୁଏ ।

ସାଙ୍ଗର୍ ଗାନ୍ଧୀଙ୍କୁ ବୁଝାଇବାରେ ଅସମର୍ଥ ହୋଇଥିଲେ । ଅହିଂସାର ଦୃଢ଼ ସମର୍ଥକ, ଯିଏ ନିଜ ଜୀବନକୁ ନିଃସ୍ୱାର୍ଥପର ସେବାରେ ନିୟୋଜିତ କରିଥିଲେ, ସେ ମାନବ ଜୀବନର ଦୈହିକ ପ୍ରେମର ସଂପୂର୍ଣ୍ଣତାକୁ ବୁଝି ପାରି ନଥିଲେ । ଦୈହିକ ପ୍ରେମ ଯେ ଶକ୍ତିର ଉତ୍ସ ହୋଇପାରେ ଓ ଏହା ଦୁର୍ବଳତା ନୁହେଁ - ଏକଥା ବୁଝିବା ଗାନ୍ଧୀଙ୍କ ପକ୍ଷରେ ଅବାସ୍ତବ ଥିଲା ।

ସାଙ୍ଗର୍ ନିଜ ପାଇଁ ଗାନ୍ଧୀଙ୍କ ସମର୍ଥନ ପାଇ ପାରିଲେ ନାହିଁ, କିନ୍ତୁ ଏହି ସାକ୍ଷାତକାର ତାଙ୍କପାଇଁ ବିଶେଷ ଲାଭପ୍ରଦ ହୋଇଥିଲା । ଚେସ୍‌ଲାର କହନ୍ତି -

ଦୁହିଁଙ୍କ ମଧ୍ୟରେ ଦର୍ଶନଗତ ପାର୍ଥକ୍ୟ ସତ୍ତ୍ୱେ ସାଙ୍ଗର୍‌ଙ୍କ ଚମକପ୍ରଦ ଘଟଣାବହୁଳ ଜୀବନ ଅଧିକ ଗୌରବ ମଣ୍ଡିତ ହେଲା । ଭାରତର ସ୍ୱାଧୀନତା ଆନ୍ଦୋଳନର କିଂବଦନ୍ତୀ ପୁରୁଷ ଗାନ୍ଧୀଜୀଙ୍କ ସହ ତାଙ୍କ ସାକ୍ଷାତକାରର ବିଭିନ୍ନ କାହାଣୀ ଓ ଫଟୋଚିତ୍ର ଯୁକ୍ତରାଷ୍ଟ୍ରର ସବୁ ବଡ଼ ବଡ଼ ଖବରକାଗଜରେ ପ୍ରକାଶିତ ହେବାକୁ ଲାଗିଲା । ବିଭିନ୍ନ ରାଷ୍ଟ୍ରରେ ସାଙ୍ଗର୍‌ଙ୍କର ଖ୍ୟାତି ଓ ପ୍ରତିଷ୍ଠା ବ୍ୟାପିବାରେ ଲାଗିଲା ।

ଭାରତ ଭ୍ରମଣ କାଳରେ ସେ ପ୍ରାୟ ଚାଳିଶଟି ସାଧାରଣ ସଭାରେ ଭାଷଣ ଦେଇଥିଲେ । ବିଭିନ୍ନ ସଂଗଠନ ଗଢ଼ିବା ଓ ଜନ୍ମ ନିୟନ୍ତ୍ରଣ କ୍ଲିନିକ୍ ଖୋଲିବା ଦିଗରେ ଏହା ବିଶେଷ ସହାୟକ ହୋଇଥିଲା । ସେସବୁ ସ୍ଥାନରେ ଏହି କ୍ଲିନିକ୍‌ମାନ ଆଜି ପର୍ଯ୍ୟନ୍ତ ଅନେକ କାର୍ଯ୍ୟ କରିଚାଲିଛି । ଏହି ଭ୍ରମଣ ସାରା ବିଶ୍ୱର ସମାଜ ସଂସ୍କାର କ୍ଷେତ୍ରରେ ତାଙ୍କର ସମ୍ମାନକୁ ଦୃଢ଼ୀଭୂତ କଲା । ନାରୀବାଦୀ ଲେଖିକା ଷ୍ଟେନିମ୍ ଲେଖିଛନ୍ତି - "ଏହି ଶତାବ୍ଦୀର ଅତ୍ୟନ୍ତ ମାନବବାଦୀ ଓ ସଂସ୍କାରବାଦୀ ରାଜନୈତିକ ଆନ୍ଦୋଳନର ସାଙ୍ଗର୍ ଥିଲେ ଅଗ୍ରଦୂତ ।" ଏହା ସତ୍ୟ ଯେ ସାଙ୍ଗର୍ ଗାନ୍ଧୀଙ୍କୁ ସଂପୂର୍ଣ୍ଣ ବଦଳାଇ ପାରି ନଥିଲେ । କିନ୍ତୁ ତାଙ୍କର ପ୍ରଚେଷ୍ଟା ସମଗ୍ର ପୃଥିବୀର ଲକ୍ଷ ଲକ୍ଷ ନାରୀଙ୍କୁ ପ୍ରଭାବିତ କରିଥିଲା ଏବଂ ମୁକ୍ତିର ମାର୍ଗ ଦେଖାଇଥିଲା ।

ଦୁହିଁଙ୍କର ସାକ୍ଷାତକାରର କିଛିଦିନ ପରେ ଗାନ୍ଧୀଙ୍କ ରକ୍ତଚାପ ୨୦୦ଉପରକୁ ଉଠିଲା । ଏହାର ଦୁଇମାସ ପର୍ଯ୍ୟନ୍ତ ସେ କୌଣସି ସାଧାରଣ କାର୍ଯ୍ୟକ୍ରମରେ ଯୋଗ ଦେଇ ନଥିଲେ । ବୋଧହୁଏ ଯୌନ ବିଷୟକ ଚିନ୍ତନ ତାଙ୍କର ମାନସିକ ଚାପ ବଢ଼ାଇ ଦେଇପାରିଥାଏ । ସାରା ବର୍ଷ ଏହି ଉଚ୍ଚ ରକ୍ତଚାପ ତାଙ୍କପାଇଁ ସମସ୍ୟା ସୃଷ୍ଟି କଲା । ସେ ଅନେକ ସଂଘର୍ଷ ଓ ହତାଶାର ସମ୍ମୁଖୀନ ହେଲେ । ରାଜନୀତି କ୍ଷେତ୍ରରେ ତାଙ୍କର ଚିନ୍ତା ଉପେକ୍ଷିତ ବୋଲି ଧାରଣା ଜନ୍ମିବାରୁ ସେ ଗ୍ରାମ ସଂଗଠନ କାର୍ଯ୍ୟ ପ୍ରତି ଧ୍ୟାନ ଦେଇଥିଲେ । କିନ୍ତୁ ତାହା ମଧ୍ୟ ସନ୍ତୋଷଜନକ ହେଲାନାହିଁ ।

ଦୁଇ ମହିଳାଙ୍କ କାନ୍ଧରେ ହାତରଖି ଚାଲିବା ଯୋଗୁଁ ସେ ପୁଣି ତୀବ୍ର ସମାଲୋଚନାର ଶରବ୍ୟ ହେଲେ । କିଂତୁ ଏହାକୁ ଭ୍ରୂକ୍ଷେପ ନକରି ସେ ଜୀବନର ଶେଷ ପର୍ଯ୍ୟନ୍ତ ସତ୍ୟର ପ୍ରୟୋଗ କ୍ଷେତ୍ରରେ 'ଆତ୍ମସଂଯମ'ର ପରୀକ୍ଷା ଚଳାଇ ରଖିଥିଲେ । ଏ କ୍ଷେତ୍ରରେ ତାଙ୍କର ବିରୋଧିମାନଙ୍କର ସଂଖ୍ୟା ବଢ଼ିବାରେ ଲାଗିଲା । କିଂତୁ ପରବର୍ତ୍ତୀ କାଳରେ ଡେଭିଡ୍ କଟ୍‌ରାଇଟ୍ ଓ କାଥ୍‌ରିନ୍ ଟିଡ୍‌ରିକ୍ ଏ ସଂପର୍କରେ ମତ ବ୍ୟକ୍ତ କରି କହନ୍ତି ଯେ ଆଧ୍ୟାତ୍ମବାଦର ଅନୁସନ୍ଧିତ୍ସୁ ଗାନ୍ଧୀ ଥିଲେ ଜଣେ ସାଧାରଣ ମଣିଷ —କିଂତୁ ଅସାଧାରଣ ଥିଲା ତାଙ୍କର ପ୍ରତିଭା ।

## ସହାୟକ ଉପାଦାନ ପଞ୍ଜି :

*Collected works of Mahatma Gandhi*, Vol.62, P.154 in Kathryn, Tidrick *Gandhi* A Political and spiritual life (I.B. Tauris, Ny, 2006)

David Cortright, *Gandhi and Beyond, Non-Violence for an Age of Terrorism*, (Viva Books Pvt. Ltd.. 2007)

*Harijan*, Feb 1, 1935 in S.K.Biswal and B.K. Nanda, *Gandhi's writing and Speeches* Vol.2 *To the Women* (Arise Publisher, N. Delhi, 2008)

"Gandhi and Sanger Debate Love, Lust and Birth Control," #23 Winter 1999/2000 in www.nyu/edu/projects/sanger/secure/newsletter/articles/gandhi-debate.html.



# ସାତଟି ସାମାଜିକ ପାପ

ନୀତିହୀନ ରାଜନୀତି
ଚରିତ୍ର ବିହୀନ ଶିକ୍ଷା
ପରିଶ୍ରମ ବିହୀନ ଧନ ଉପାର୍ଜନ
ନୈତିକତା ହୀନ ବାଣିଜ୍ୟ ବ୍ୟବସାୟ
ବିବେକ ବିହୀନ ସୁଖ
ସମ୍ବେଦନ ବିହୀନ ବିଜ୍ଞାନ
ତ୍ୟାଗ ବିହୀନ ଉପାସନା ।

-ମହାତ୍ମା ଗାନ୍ଧୀ